# ଗୁପ୍ତେଶ୍ୱର-କାହାଣୀ

ଶ୍ରୀ ମଞ୍ଜୁଘୋଷ ତ୍ରିପାଠୀ ରଚିତ

ଜୟପୁରାଧିପତି ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବ ବର୍ମ୍ମା
ମହୋଦୟଙ୍କ ଆନୁକୂଲ୍ୟରେ ପ୍ରକାଶିତ ।



ଆଶା ପ୍ରେସ୍, ବ୍ରହ୍ମପୁର

୧୯[illegible]୪

ମୂଲ୍ୟ ଦଶ ପଇସା



# ଉତ୍ସର୍ଗପତ୍ର

ସ୍ୱସ୍ତି ଶ୍ରୀ ଜୟପୁର-ରାଜ୍ୟାଧିପତି ସାହିତ୍ୟରଥୀ

ଶ୍ରୀ ଶ୍ରୀ ଶ୍ରୀ ବିକ୍ରମଦେବବର୍ମ୍ମା ମହୋଦୟଙ୍କ

ଧର୍ମପତ୍ନୀ

ଶ୍ରୀମତୀ ସୌଭାଗ୍ୟବତୀ

ଶ୍ରୀ ଶ୍ରୀ ଶ୍ରୀ ହୀରାମଣି ପଟ୍ଟମହାଦେବୀ ମହୋଦୟାଙ୍କ

ପବିତ୍ର କରକମଳରେ

ଏହି ପୁସ୍ତିକା

ଆନ୍ତରିକ ଭକ୍ତି ସହକାରେ ଉତ୍ସୃଷ୍ଟ ।

ଚିବାବନି
୧୯୩୬. } ଲେଖକ

# ଭୂମିକା

ଯେଉଁ ଗୁପ୍ତେଶ୍ୱରର କଥା ଏହି ପୁସ୍ତିକାରେ ଲିଖିତ ହୋଇ ଅଛି, ତାହା ଜୟପୁର-ଅନ୍ତର୍ଗତ ଗୋଟିଏ ପରମ ରମଣୀୟ ସ୍ଥାନ ।

ତିନି ପାଖରେ ଶ୍ୟାମଳ ପର୍ବତ, ଆଉ ଗୋଟିଏ ପାଖରେ ଗଦ୍‌ଗଦ୍‌ନାଦିନୀ ଅଚ୍ଛନୀର ନଦୀଟିଏ—ଉପଳ ବନ୍ଧନ ଭେଦ କରି ପ୍ରବାହିତା; ନଦୀ ପର୍ବତ ପାରି ହେଲେ ନିବିଡ଼ ଅରଣ୍ୟମାଳା—ରୁଦ୍ର, ସୁନ୍ଦର, ଝିଲ୍ଲୀର ଝଙ୍କାରରେ ମୁଖରିତ; ଏହି ସମସ୍ତ ମଧ୍ୟରେ ଗିରି ପାଷାଣ କୁଟୀର ବକ୍ଷରେ ଧରି ଖଣ୍ଡିଏ ଅଳ୍ପ-ପରିସର ଉଚ୍ଚାବଚ ସ୍ଥାନ— ଏହାହିଁ ଗୁପ୍ତେଶ୍ୱର ।

ପ୍ରାୟ ଜନଶୂନ୍ୟ ଏହି ଗିରି-ପରିଗତ ସ୍ଥାନଟିରେ ପ୍ରକୃତିର ଯେଉଁ କମନୀୟତା ବିକଶିତ ହୁଏ, ତାହା ଅନିର୍ବଚନୀୟ । ଏହାର ପର୍ବତରେ ପକ୍ଷୀମାନଙ୍କର କୂଜନ ବା ଗୁଳ୍ମଲତିକାର ବିଳାସ, ଜ୍ୟୋତ୍ସ୍ନା ରାତିରେ ଏହାର ସୌନ୍ଦର୍ଯ୍ୟ ବା ଅନ୍ଧକାର-ରାତିରେ ଏହାର ଗାମ୍ଭୀର୍ଯ୍ୟ ଅନ୍ୟସ୍ଥାନର ଶୋଭା ପରି କେବଳ ଚକ୍ଷୁକୁ ସ୍ପର୍ଶ କରେନାହିଁ, ଏକାବେଳକେ ମର୍ମରେ ପ୍ରବେଶ କରି ଦର୍ଶକକୁ ଅଭିଭୂତ କରିପକାଏ ।

କିନ୍ତୁ ପ୍ରାକୃତିକ ସୌନ୍ଦର୍ଯ୍ୟ ଜୟପୁରରେ ସର୍ବତ୍ର ସୁଲଭ; ତେଣୁ ସେଥିପାଇଁ ଗୁପ୍ତେଶ୍ୱର ବିଖ୍ୟାତ ନୁହେ । ଗୁପ୍ତେଶ୍ୱର ବିଖ୍ୟାତ ଆଉ ଏକ କାରଣରୁ—ଗୋଟିଏ ଶିବଲିଙ୍ଗ ହେତୁରୁ । ଏହି ଶିବଲିଙ୍ଗଟି ପ୍ରକୃତିର ଏକ ଅଦ୍ଭୁତ ରଚନା ।

ଗୁପ୍ତେଶ୍ୱରକୁ ବେଷ୍ଟନ କରି ଯେଉଁ ସବୁ ପର୍ବତ ବିଦ୍ୟମାନ, ସେ ଗୁଡ଼ିକ ଚୂନ-ପଥରର ପର୍ବତ । ଗିରିର ଅନ୍ତର୍ବାହି ଜଳ-ସ୍ରୋତ

ଏଥି ମଧ୍ୟରୁ ଗୋଟିକୁ କୋରି କୋରି ତନ୍ମଧ୍ୟରେ ଅନେକ ଗୁହାର ସୃଷ୍ଟି କରିଅଛି । ଏ ସବୁ ଗୁହାର ଗାତ୍ରରୁ କେଉଁଠାରେ ଚୂନ-ଜଳ କ୍ଷରିତ ହେଉଅଛି, କେଉଁ କେଉଁଠି ବା ଗୁହାତଳେ ପତିତ ଚୂନ ସ୍ତୂପାକାର ଧାରଣ କରିଅଛି । ଇଂରେଜୀରେ ଯାହାକୁ stalactite ଓ stalagmite କହନ୍ତି, ଏହା ତାହାହିଁ । ଏପ୍ରକାର ଦୃଶ୍ୟ ପୃଥିବୀର ଅନ୍ୟ ସ୍ଥାନରେ ଥିଲେ ସୁଦ୍ଧା ଭାରତ-ବର୍ଷରେ ବିରଳ ।

ଏ ସବୁ ବିଚିତ୍ର ଦୃଶ୍ୟ ମଧ୍ୟରେ ଏକ ପ୍ରକାଣ୍ଡ ବସ୍ତୁ ଦର୍ଶକର ଚକ୍ଷୁ ଆକର୍ଷଣ କରେ—ତାହା ଗୋଟିଏ ଗୋଲାକାର କୃଷ୍ଣ-ପାଷାଣ । ଗୋଟିଏ ଗୁହାତଳେ ଜଳସ୍ରୋତ ଆବର୍ତ୍ତିତ ହୋଇ ହୋଇ ଖଣ୍ଡିଏ ପ୍ରସ୍ତରକୁ ବର୍ତ୍ତୁଳ ରୂପ ଦାନ କରିଅଛି । ଉଚ୍ଚତାରେ ଏହା ଗୃହ ହାତରୁ ଅନ୍ୟୂନ; ଏହାର ପରିଧି ପ୍ରାୟ ଅଠହାତ । ଆକାରରେ ଏହା ଠିକ୍ ଶିବଲିଙ୍ଗ ପରି, ଆଉ ନୈସର୍ଗିକ ହୋଇ ଥିବାରୁ ଏହା ସ୍ୱୟମ୍ଭୂ ଲିଙ୍ଗ ରୂପେ ହିନ୍ଦୁମାନଙ୍କ ଚକ୍ଷୁରେ ପରମ ପବିତ୍ର ।

ଏହିଟିହିଁ ଲୋକ-ପ୍ରସିଦ୍ଧ ଗୁପ୍ତେଶ୍ୱର ଶିବଲିଙ୍ଗ । ଏହାରି ହେତୁରୁ ଗୁପ୍ତେଶ୍ୱର ସ୍ଥାନର ଏତେ ଖ୍ୟାତି ।

ବର୍ତ୍ତମାନ ପୁସ୍ତିକାରେ ପାଠକ ଉକ୍ତ ସକଳ ଦୃଶ୍ୟର ବର୍ଣ୍ଣନା ଦେଖିବେ । ଗୋଲାକାର କୃଷ୍ଣପାଷାଣଟି ଯେ ଶିବଲିଙ୍ଗ, ଏହା ପୂର୍ବରୁ କଥିତ ହୋଇଅଛି । ଲେଖକ ଯାହାକୁ "କପିଳା ଗାଈ" ବୋଲି କହିଅଛନ୍ତି, ତାହା—ଜଳସ୍ରାବ ଗୁହାର ଛାଦ । ପାରିଭଡ଼, ରତ୍ନଭଣ୍ଡାର, ଭାଲୁପାହାର ପ୍ରଭୃତି ଗୋଟିଏ ଗୋଟିଏ ଗୁହା ।

ଏ ପର୍ଯ୍ୟନ୍ତ ଯାହା ଲିଖିତ ହେଲା, ସେଥିରୁ ଦେଖାଯିବ ଯେ, ଗୁପ୍ତେଶ୍ୱରରେ ସବୁ ପ୍ରକୃତି-ରଚିତ । ମାନବ-ହସ୍ତର ସ୍ପର୍ଶ ଦ୍ୱାରା ଏ ସ୍ଥାନ କଳୁଷିତ ହୋଇ ନାହିଁ । ତେଣୁ ଅନାୟାସରେ ବୁଝାଯିବ, କାହିଁକି ଏ ସ୍ଥାନଟି ଏଡ଼େ ଶୁଦ୍ଧ, କାହିଁକି ଏ ସ୍ଥାନର ଦେବତା ଏଡ଼େ ପବିତ୍ର ।

କିନ୍ତୁ ସ୍ୱାଭାବିକ ଶୁଦ୍ଧି ଛଡ଼ା ଅନ୍ୟ ଏକ କାରଣରୁ ମଧ୍ୟ ଗୁପ୍ତେଶ୍ୱର ପବିତ୍ର । ଜନଶ୍ରୁତିରେ କିମ୍ବଦନ୍ତୀ ଅଛି ଯେ, ରାମଚନ୍ଦ୍ର ଗୁପ୍ତେଶ୍ୱର ନିକଟ -ବର୍ତ୍ତୀ ରାମଗିରିକୁ ଆସିଥିଲେ ।

ଯେଉଁମାନେ ଜୟପୁରର ବିବରଣ ଅବଗତ ନୁହନ୍ତି, ସେମାନେ ଏହାକୁ ଅଳୀକ କଳ୍ପନା ଭାବି ପାରନ୍ତି । କିନ୍ତୁ ଏକାନ୍ତ ଅସମ୍ଭବ ନ ହୋଇପାରେ । ଜୟପୁରର ଗୋଟିଏ ପାଖ ମଧ୍ୟପ୍ରଦେଶ ଓ ଆର୍ଯ୍ୟାବର୍ତ୍ତ ସହିତ, ଆଉ ଗୋଟିଏ ପାଖ ଗୋଦାବରୀ ଓ ଦାକ୍ଷିଣାତ୍ୟ ସହିତ ସଂଲଗ୍ନ । ଗୁପ୍ତେଶ୍ୱର ବା ରାମଗିରିଠାରୁ ଗୋଦାବରୀ ଅତି ଦୂରବର୍ତ୍ତୀ ନୁହେ—ଗୁପ୍ତେଶ୍ୱର ବାଟେ ଯେଉଁ ଶବରୀ ନଦୀ ପ୍ରବାହିତା, ତାହା ଗୋଦାବରୀରେ ହିଁ ପଡ଼ିଅଛି । ଏପରି ସ୍ଥଳରେ, ଚିତ୍ରକୂଟ ଠାରୁ ଗୋଦାବରୀ ଯିବା ପଥରେ ରାମଚନ୍ଦ୍ର ଯେ ଜୟପୁର ଅତିକ୍ରମ କରିଥାଇ ପାରନ୍ତି, ଏପରି ଭାବିବା କଷ୍ଟ କଳ୍ପନା ନୁହେ । ପ୍ରାଚୀନ କାଳରେ ଯେଉଁ ବିଶାଳ ଅରଣ୍ୟାନୀ ବିନ୍ଧ୍ୟର ଦକ୍ଷିଣରୁ ଗୋଦାବରୀ ଯାଏଁ ବିସ୍ତୃତ ଥିଲା, ଯାହାର ଭିନ୍ନ ଭିନ୍ନ ଅଂଶକୁ ଲୋକେ ଉତ୍ତରକାଳରେ ମହାକାନ୍ତାର, ମହାବନସ୍ଥଳ ବା ଝାଡ଼ଖଣ୍ଡ ବୋଲି କହିଲେ, ଜୟପୁରର ଅରଣ୍ୟ ସେହି ପ୍ରାଚୀନ ବନଗହ୍ୱରର ଅଂଶ । ଏଣୁ ରାମଚନ୍ଦ୍ର ଗୁପ୍ତେଶ୍ୱରର ସମୀପସ୍ଥ ପ୍ରଦେଶ ବାଟେ ଦାକ୍ଷିଣାତ୍ୟକୁ ଗମନ କରିଥିଲେ ବୋଲି

ଯାହା ଜନ-ମୁଖରେ ପ୍ରଚଳିତ, ତାହା ସମ୍ପୂର୍ଣ୍ଣ ଅମୂଳକ ନ ହୋଇ ପାରେ । କିନ୍ତୁ ସତ୍ୟ ହେଉ ବା ନ ହେଉ, ଏହି ଜନବାଦ ଗୁପ୍ତେଶ୍ୱରକୁ ଲୋକ-ଦୃଷ୍ଟିରେ ଅଧିକତର ଗୌରବ କରିଅଛି ।

ଏପରି ପୁଣ୍ୟସ୍ଥାନର ପ୍ରସଙ୍ଗ ଆଲୋଚିତ ହେବା ଉଚିତ । ଶ୍ରୀମାନ୍ ମନ୍ମଥ ଘୋଷ ଏଥିପ୍ରତି ଦୃଷ୍ଟି ଦେଇଥିବାର ଦେଖି ମୁଁ ସୁଖୀ ହେଲି । ସେ ବହୁଦିନ ଗୁପ୍ତେଶ୍ୱରରେ ଅବସ୍ଥାନ କରି ସେଠାର ସମସ୍ତ ବିଷୟ ସଂଗ୍ରହ କରିଅଛନ୍ତି । ବିଷୟ ଗୁଡ଼ିକ ବୈଜ୍ଞାନିକ ଆକାରରେ ଲିପିବଦ୍ଧ କରିବା ତାଙ୍କର ଅଭିପ୍ରାୟ ନୁହେ, ସେଗୁଡ଼ିକୁ ପୌରାଣିକ ଛାଞ୍ଚରେ ଢାଳି ଉତ୍କଳବାସୀଙ୍କ ସମ୍ମୁଖରେ ସ୍ଥାପିତ କରିବାହିଁ ତାଙ୍କର ଉଦ୍ଦେଶ୍ୟ ଥିଲାପରି ଜଣାପଡ଼େ । ଭାଷାର ସରଳତା ଓ ବର୍ଣ୍ଣନାର ମନୋହାରିତା ଦେଖିଲେ ତାଙ୍କର ଉଦ୍ଦେଶ୍ୟ ଯେ ସିଦ୍ଧ ହେବ, ସେଥିରେ ମୋର ସନ୍ଦେହ ନାହିଁ । ଜୟପୁରର ଅନ୍ୟ ଯୁବକମାନେ ତାଙ୍କର ଅନୁସରଣ କଲେ ଭବିଷ୍ୟତରେ ଗୁପ୍ତେଶ୍ୱର-ବିଷୟକ ବୈଜ୍ଞାନିକ ଆଲୋଚନା ମଧ୍ୟ ମିଳିପାରେ ।

ଶ୍ରୀ ଉମେଶଚନ୍ଦ୍ର ମହାନ୍ତି,

୧।୧।୧୯୩୫ ବାଲେଶ୍ୱର ।

(ଏମ୍. ଏ, ବି. ଇଡି.,

ଜୟପୁର ଉଚ୍ଚ ଇଂରେଜୀ ବିଦ୍ୟାଳୟର ଇତିହାସ-ଶିକ୍ଷକ)



# ଘୁଷ୍ମେଶ୍ୱର-କାହାଣୀ

## ରାଗ—ଇମକଲ୍ୟା

କନ୍ଧପୁର ଠାରୁ  ଦଶ ଯୋଜନରେ
ଚନ୍ଦନ କାନନେ  ନିର୍ବୃତ କୋଟରେ
ଗୁପତ କୈଳାସ  ଲଭିଲା ଖ୍ୟାତି
ଶିବଭକ୍ତ ରବ-  ଝୁଲି ନୃପତି-
ଭକ୍ତିରେ ହୋଇ ପ୍ରସନ୍ନ,
ଘୁଷ୍ମ ଜାନନ୍ତି ପରକାଶ କଲେ ଭବଗ୍ରାହ୍ୟ ପଞ୍ଚାନନ ।

ଗୁପ୍ତରୁ ପ୍ରକଟ  ହୋଇଲେ ସେମନ୍ତ,
ଘୁଷ୍ମେଶ୍ୱର ନାମ  ବହିଲେ ଯେଣୁ
ଅତି ଅଦଭୁତ  ଶଙ୍କର ସ୍ଥାନ;
ଦେଖିବା ମାନଙ୍କେ  ହର୍ଷିତ ମନ,
ଶୁଣିଲେ ଲାଗିବ ମିଥ୍ୟା !
ଈଶ୍ୱର ଇଚ୍ଛାରେ କିସ ବା ନ ହୁଏ ? ମନୁଷ୍ୟ-ଜୀବନୀ ବୃଥା !

ଜିଏ ସମେ ପୂର୍ଣ୍ଣ  ଗୃହ ଦାଗରେ
ନିରନ୍ତର ରହେ  ଏକ ଭାବରେ ।
ପଶ୍ଚିମ ଦିଗ ର  ହିବସ୍ୱ ନଦୀ,
ଝର ଝର ବହେ  ପାଷାଣ ଭେଦି,
ବରଷା ହୁଏ ପ୍ରଭାତ ।
ବୃଷକଣ୍ଠ-ଆଜ୍ଞା ପାଳନେ ଫଳିତ ଦେବାଗାର ଅକ [illegible]

ସୌମ୍ୟ ଯାମ୍ୟେ ଲକ୍ଷ ବେନି ଭୂଧର ।
ଯାମ୍ୟ ଗିରି ଶିଖେ ଶିବ ମନ୍ଦର ।
ତହିଁ ଶୋଭା ପାଏ ପାବଚ୍ଛ ଶ୍ରେଣୀ,
ସ୍ୱର୍ଗପୁର ପ୍ରତି ହବା ନିଃଶ୍ରେଣି
ଏକଥାନ୍ତି ଲୋଗେ ସତ
ଦେଖି ପଶ୍ଚିମରେ ମନ୍ଦର ପାର୍ଶ୍ୱରେ **ସ୍ୱର୍ଗଦ୍ୱାର** ବିରାଜିତ ।

ପାବଚ୍ଛ-ନିଚୟ ଅବରୋହି ଗଲେ,
ସ୍ୱର୍ଗଦ୍ୱାର ପାଶେ ପ୍ରବେଶ ହେଲେ,
ନାନା ବର୍ଣ୍ଣ ବୃକ୍ଷ କଳପ ପତ୍ର,
ହାହା ହୁହୁ ତାନ, ହୁଏ ପ୍ରଶାନ୍ତ ।
ରମ୍ଭାଗଣ ନୃତ୍ୟ ପଥ
ପଡ଼ଯାଏ, ଏଣୁ କାମ ବସିବାକୁ ଥାନ ଖୋଜି ହୁଏ ଶ୍ରାନ୍ତ ।

**ମାଳତୀ ମଣ୍ଡପେ** ହୋଇ ଅଧୀନ
ଦେବାଳୟ ଦ୍ୱାରେ କଲେ ଦର୍ଶନ,
ପ୍ରତେ ହୁଏ, ଏ କି ପାତାଳ ପୁର !
ସ୍ୱଭାବେ ତ ପାର୍ଶ୍ୱେ ସ୍ୱର୍ଗ ଦୁଆର ।
ମଧ୍ୟପୁରେ ସବୁ ସ୍ଥିତ
ତିନିପୁରଯାକ ଏକତ୍ର ନିରେଖି ମନ ହୁଏ ଆନନ୍ଦିତ

ପ୍ରବେଶିଲେ ଦେବ ଦ୍ୱାର ନିକଟ,
ବାମ ଦକ୍ଷିଣକୁ ଦୁଇଟି ବାଟ
ଯେଉଁ ବାଟେ ଗଲେ ଭେଟିବ ହର
ମୂଳ ଏକା ଭକ୍ତ ଭାବେ ଯିବାର
ଭୁକ୍ତି ମୁକ୍ତି ବେନି ପନ୍ଥା
ଯସାରେ ଈଶ୍ୱର ଦେଖାଇ ଦେବାକୁ କଲେକି ଏହି ବ୍ୟବସ୍ଥା ।?

ଦ୍ୱାର ମଧ୍ୟେ ରହି    ଦେଲେ ଅନାଇଁ,
ଦୃଷ୍ଟି ପଡ଼େ ଲିଙ୍ଗ    ଉପରେ ଯାଇ
ମହାଶମ୍ଭୁ-ଲିଙ୍ଗ    ପୃଥୁଳ କାୟ
ଦର୍ଶନ ମାତ୍ରକେ    ଅଶେଷ ତନ୍ମୟ
ଦର୍ଶକ ହୁଏ ତାଟକା,
ଭାବଇ, ମନରେ କଳିଯୁଗ ପାଇଁ ରଖା କି ମୁକ୍ତି ପୁଟିକା !
ଲିଙ୍ଗ ପାଖେ ଯାଇ    କଲେ ଦର୍ଶନ,
ଏହି ଭାବ ଜାତ    ହୁଏ ତତ୍‌କ୍ଷଣ—
ମହାଯୋଗୀ ଗୁରୁ    ଯେଣୁ ଈଶ୍ୱର,
ସମାଧି ଯୋଗରେ    ହୋଇ ନିଶ୍ଚଳ,
ତୋଷି ଯୋଗୀଜନ ଚିତ୍ତ,
ଆପଣାର ଯୋଗୀ ଗୁରୁ ନାମ ଗୋଟି କରି ଦେଇଛନ୍ତି ସାର୍ଥ ।
ଅନନ୍ତ ସ୍ୱଭାବେ    ଶିବ ନିର୍ଗୁଣ
ଶକଳରୁ ଯେବେ    ହୁଅନ୍ତି ଭିନ୍ନ ।
ଶୈବ ସିଦ୍ଧାନ୍ତରେ    ଏ ମତ ଯାହା
ପ୍ରତ୍ୟକ୍ଷ ଦର୍ଶନ    ହୁଅଇ ତାହା ।
ହୋଇବାରୁ ଶକ୍ତିବନ୍ତ
ଗୁପତେ କୈଳାସ ରଚନା କରଣ ଗୁପ୍ତେଶ୍ୱର ନାମେ ଖ୍ୟାତ ।
ପୁଣି ଅଦ୍ଭୁତାୟ,    କାହିଁ ନ ହେବ,
ଦର୍ଶନେ ମନରେ    ଜାତ ଏ ଭାବ—
ବନ୍ଧୁ ଜନ୍ମ ପୁଣ୍ୟ    ଥିବାରୁ ଠୁଳ,
ମିଳିଲା ଦର୍ଶନ,    କଲ୍ମଷ ଦୂର ।
ଧନ୍ୟ ଧନ୍ୟ ନର ଜନ୍ମ,
ବେଦାନ୍ତ-ସମ୍ମତ ମୂରତି ସାକ୍ଷାତ କଲ୍ୟାଣା ଜୀବ ଦର୍ଶନ !

ମହାକାଳ ରୂପ,    ଶକ୍ତି ହୃଦରେ,
କଙ୍କାଳର ଶୋଭା    ଧରେଣ ମୁଣ୍ଡରେ,
ଅଟଳ ଶଙ୍କର    ଅଟନ୍ତି ନିର୍ଭୟେ,
ଶକ୍ତି ଶଙ୍କର    ଗୁପତ ଧନ । (ଏ)

ଶଙ୍କର ସ୍ୱୟଂ ବଟଳ
ଦର୍ଶନ ମାତ୍ରକେ ଚର୍ତୁବର୍ଗ ପ୍ରାପ୍ତି ହୋଇଯାଏ ଏ ଶାସ୍ତ୍ରରେ ।

ମଣ୍ଡଳେ ଅର୍ଦ୍ଧିନୀ    ଥିବା ହୃଦରେ ।
କଙ୍କାଳର ଶୋଭା    ଯାଏ ମୁଣ୍ଡରେ ।
ମସ୍ତକେ ଜାହ୍ନବୀ    ଫଟତ ଶୋଭା ।
ବସୋଇଛି କୃଷ୍ଣ    ଲାଲୁର ପଞ୍ଚ ।

ଉପରକୁ ଦେଲେ ଦୃଷ୍ଟି,
ବାସୁକି ଫଣା ଦେଖ ଶିରେ ମସ୍ତଧର ଆଧ ଅଛି ବନ୍ଧ !

ଏମି ଅଦ୍ଭୁତ    ପବନ ସ୍ଥାନ
ପୂର୍ବରେ କବି    ନାହିଁ ବର୍ଣ୍ଣନ ?
ଆର୍ଯ୍ୟ ଋଷି ମାନେ    ତ୍ରିକାଳ ଜ୍ଞାତା,
କାହିଁ ନ ବର୍ଣ୍ଣିଲେ    ଏ ସ୍ଥାନ ଜାଣି ?

ଏଥି ବିଶେଷ କାରଣ—
ଭକତି ସହିତ କୁଣ୍ଡରେ ବୁଡ଼ିଲେ ହୁଏ ନିଃସଙ୍ଗ ମନ ।

ଦକ୍ଷ ଯଜ୍ଞେ ଶାନ୍ତି    ଶ୍ରୀ ମହେଶ୍ୱର
ସତୀଙ୍କ ବିରହେ    ଭ୍ରମି ନିପୁର
ପରିବେଶ ହେଲେ    ମାଳ ଦେଶରେ
ଶିବ ଦଗେ ଛିଡ଼ି-    ପୂର୍ତ୍ତି ସ୍ଥାନରେ ।

ମଠ ନିରକ୍ଷ ଦେଖିଣ—
"ଏହି ଗୋଟି ସିନା ମୋ କୈଳାସ ଗିରି, ଏ ବଡ଼ ପବିତ୍ର ସ୍ଥାନ !

ଯେବେ ମୁଁ ପ୍ରିୟାଙ୍କୁ ଲଭନ୍ତି ବାରେ,
ଗୁପ୍ତରେ ରଖାନ୍ତି ଆଣି ଏଠାରେ ।"
ଏତେ ବୋଲି ମନେ ପାଞ୍ଚିଲେ ହର
ପାର୍ବତୀ ବିବାହ ହିଁ ଶୀଘ୍ର ବାର ।
ହେବାରୁ, ଆସିଲେ ଏଥି ।
ଏଣୁ ବିନାୟକ ବୃଷ ନନ୍ଦୀ ଆଦି କଏବେ ନାହାନ୍ତି ସାଥି ।
ଉମା ଆଣିଥିବା ଯୌତୁକ ଘର
ଦକ୍ଷିଣେ ଥାପିଲେ **ରତ୍ନ ଭଣ୍ଡାର** ।
ବାମ ହସ୍ତେ କୋଠା **ଜଗତମୋହନ**
**କଢ଼ିଲାଗାଣ୍ଡି** ଟି ଯୌତୁକ ଧନ--
କୁମାର ଉତ୍ପତ୍ତି ହେଲେ,
କ୍ଷୀରପାୟୀ ହେବେ, ଭବ ହର ଜଗମୋହନରେ ବାନ୍ଧିଥିଲେ ।
ଯଉତୁକ-ଲବ୍ଧ ବିହଗ କୁଳ
ପାରାବତ ଶୁକ ସାରି କୋକିଳ
ଆପଣା ମନ୍ଦିର ପର୍ବତ ପରେ
ହର "ରହ ସୁଖେ" ବୋଲି କହିଲେ,
"ରହ କର କଳ ସ୍ୱର ।"
ପଶ୍ଚିମ ପାର୍ଶ୍ୱେ **ପାରାଭାଡି** ରଚି ରଖି ପାରାବତ କୁଳ ।
ହିମବନ୍ତ ପୁରେ ପଶୁ ସକଳ
ଯଉତୁକେ ବନ୍ଧା ମାଳକୁ ମାଳ -
ଭଲ୍ଲୁକ ଶଙ୍ଖଣୀ ହରିଣ ଆଦି ।
ହେବେ ପାର୍ବତୀଙ୍କ ଚିତ୍ତ ବିନୋଦୀ
ଏହା ପାଞ୍ଚି ଏଥି ହର
ଭାଲୁ ହିଁଙ୍କ ଅଧ ରଖିବା ଇଚ୍ଛାରେ ରଚିଲେ **ଭାଲୁପାହାର** ।

ପାର୍ବତୀ-ପୀଡରେ 	ନ ହେବ ହେଳା,
ଏହା ପାଇଁ ଶିବ 	ବନ୍ଧୁ ସୁଶୀଳା
ସହଚରୀ ଗଣ 	ନିଜ ମନ୍ଦରେ
ଯତନେ ଥାପିଲେ 	ଯଥା ସ୍ଥାନରେ ।

ସେ ଅନୁଦିନ ସେବନ୍ତି,
ପାର୍ବତୀଙ୍କ ଆଜ୍ଞା ପାଳନେ ତତ୍ପର ଧୀର ଭାବେ ରହିଛନ୍ତି ।

ପାର୍ବତୀ-ଜନକ 	ହିମ ଆଳୟ;
ଏଣୁ ଏହି ଗୃହ 	ହିମ ଆଳୟ ।
ହିମବନ୍ତ ପୁରେ 	ଶୋଭା ବିତାନ;
ସତତ ଏଠାରେ 	ବନ୍ଧୁ ବ-ାନ

ବିରଚନା କଲେ ହର
ପିତୃ ଗୃହ ସ୍ମୃତି ଭୁଲି ଯିବେ ସତୀ ଏ କଥା ପାଇଁ ସତ୍ୱର ।

ପ୍ରତି ପୁରେ ବିଛା 	ସୁପୁଷ୍ପ ରଜ
ନ ବାଧିବ ବୋଲି 	ପାଦ-ପଙ୍କଜ ।
କୋମଳତା ଗୁଣେ 	ହଂସୁଳ ତୂଳ
ଦଳ ଦେବା ହେତୁ 	ବୋଲାଏ ଧୂଳ ।

ଧନ୍ୟ ସେ ବିଶ୍ୱକର୍ମା,
ବିଶ୍ୱ ଭୁବନ ରଚନା କଲେ ଯାହା ନ ଭାଙ୍ଗିବେ ବ୍ରହ୍ମା !

ସନ୍ତୋଷେ ଗୁପତେ 	ପାର୍ବତୀ ହର
ରହିବାରୁ ଶୂନ୍ୟ 	କୈଳାସ ପୁର ।
ଦେବ ଋଷିମାନେ 	ଧ୍ୟାନରେ ଜାଣି,
ଏଠାକୁ ଆସିଲେ 	ଶ୍ରେଣୀକ ଶ୍ରେଣି ।

ଏହି କଥା ଦେଖି ହର,
ସମସ୍ତ ଋଷିଙ୍କି ଏକ ସ୍ଥାନ ଦେଲେ, ତା ନାମ **ଋଷିପ ଦ୍ୱାର** ।

ଦେବଙ୍କୁ ଭାଷିଲେ ମହେଶ୍ବର,
"ଗୁପ୍ତେ ଥିବ ଆମ୍ଭେ କେତେକ କାଳ !
ତୁମ୍ଭେ ଦେଖ ଏଥି ସରଗ ପଥ,
ଗୁପ୍ତେ ଅଛି ମୋର ଘର ସାକ୍ଷାତ
ନ ଜାଣିବେ ଆନ କେହ୍ହ।"
ଋଷିଙ୍କି ଭାଷିଲେ, "ପୁରଣେ ନ ଲେଖା, ଗୁପ୍ତ ନାଳ ଗୋଷ୍ଠ ଏହ
ଦର୍ଶନ ଧନ ପାଇ ଗୁମ୍ଫରେ ଦେବେ
ତାହା ନ ପାଇଣୁ ଅଯୋଗ୍ୟ ସର୍ବେ ।
ସ୍ବର୍ଗଦ୍ଵାର କାଟେ ଯେ ଜମନ,
ଦେବ ବନ୍ଦେ ସାଧୁ ସ୍ନାନ ମାର୍ଜ୍ଜନ,
ଯେ ପାଣ ବେଦରେ ଯାଇ
ଗୁପ୍ତଠ ଭାବରେ ନିବଙ୍କୁ ଦେଖନ୍ତି, ଦେବଜନ୍ମିଷ୍ଟ ଅଛଇ
ଗୁପ୍ତେ କୈଳାସ ବିଦିତ ବନ !
ନାନା ପକ୍ଷୀ, ଜନ୍ତୁ ଥିଲେହେଁ ସମ୍ପୂର୍ଣ୍ଣ,
ଶିବ ଆଜ୍ଞା ଯେ ଗୁ ଗ୍ଧ ଜଣା ହିଂସା,
ସମସ୍ତେ ସମାନେ କରନ୍ତି ବସା ।
ଏକଥା ଦେଖେ ପ୍ରତ୍ୟକ୍ଷ--
ଜଳ-ପାନ କଲ୍ଲୁ ଘାଟେ ସଦା ଥାନ୍ତି ମନ୍ଧ୍ୟମାଛ ଲକ୍ଷ ଲକ୍ଷ !
ଏକ ଦିନେ ଗ୍ରୀଷ୍ମ ପ୍ରାରମ୍ଭ କାଳେ
ରମ୍ୟ ବନ ଦେଖି ଶିବ ଭାବିଲେ,
"ପଶୁବେ ଶବରେ- ଦେବ ମୁଁ ଦେଖ
ଘାଟଣି ସହତ ନିତ୍ୟ
ଏଥୁ ବନ ପ୍ରଦେଶେ
ଆଜ ଏ ଜନନେ କାଳରା ପ ପରିଣି କରନ୍ତି ।

ପାର୍ବତୀ କନ୍ଧ ସାଜିଲେ ବେଶ
ଶବର ଶବରୀ ଉମା ମହେଶ ।
ଧନୁଶର-କରେ ବନ-ବିହାର
ବନ୍ଧୁତ ବହିଲେ ପାର୍ବତୀ ହର ।

ପାର୍ବତୀଙ୍କୁ ହେଲା ତୃଷା
ଶିବଙ୍କୁ ଭଷିଲେ, "ଜଳ ବିନା ମୁହିଁ ପାଉ ନ କଣ୍ଠର ରସା ।"

ପ୍ରିୟା-ସ୍ନେହେ ଶିବ ମାଇଲେ ଶର,
ଫୁଟି ବାହାରିଲା ନିର୍ମଳ ଝର ।
ଖୋଳା ହେତୁ ଆଜ ବହିଲା ଯେଣୁ,
ଓଖୋଲା-ଓ ନାମଟି ବହିଲା ତେଣୁ ।

ଶବର କୃତା ଶବରୀ
ନାମ ପୁଣି ବହି ଦକ୍ଷିଣେ ବହଇ; ଗଙ୍ଗା ସମ ସ୍ୱଚ୍ଛ ବାରି ।

ଜଳପାନେ ତୋଷ ପାର୍ବତୀ ବସି,
ବାଲ୍ୟକାଳ ଗୋଡ଼- ଖେଳ ମନାସି,
ଶିବଙ୍କୁ ଭଷିଲେ, "ଏ ନଦୀ ଗୋଡ
ଖେଳିବା କି ପ୍ରଭୁ ? ନ ପାରେ ଛାଡ ! "

ସ୍ନେହ ହେତୁ ଅଙ୍ଗୀକାର
କଲେ ଶିବ, ଶିବା ଖେଳିଲେ ଆନନ୍ଦେ; ଅଛି ସେ **ଗୋଡ଼ିପାହାର**

ଗ୍ରୀଷ୍ମ କ୍ରୀଡ଼ା ଅନ୍ତେ ପାର୍ବତୀ ହର
ବରଷା ପ୍ରାରମ୍ଭେ ରହିଲେ ପୁର ।
ଦିନେ ପାର୍ବତୀଙ୍କ ହେଲା ସ୍ମରଣ
ବାଲ୍ୟକାଳ ବାଲି ବନ୍ଧ ନିର୍ମାଣ ।

ଗୋପନେ ମନ୍ଦିରେ ଯାଇ
ବାଲି ବନ୍ଧ ରଚି ଖେଳୁଥିଲେ ସତୀ ଈଶ୍ୱରଙ୍କୁ ଛଳ ଦେଇ ।

ପାଶୁଁ ଉମାଦେବୀ ହୁଅନ୍ତେ ଭିନ୍ନ,
ଖୋଜି ଖୋଜି ଗଲେ ତିନି ଲୋଚନ ।
ଦେଖିଲେ ପାର୍ବତୀ ବାଲିରେ ବସି
ରଚୁଛନ୍ତି ବନ୍ଧ ମନେ ଆନନ୍ଦ ।
ପଛ ଆଡ଼ୁ ଶିବ ଡାକେ;
"ଏ କସ ଗୋ" ବୋଲି ଭଣନ୍ତେ, ପାର୍ବତୀ ମଥା ପୋତି ଦେଲେ ଲାଜେ !
ପ୍ରିୟାଙ୍କୁ ସାଦରେ କରଣି କୋଳ,
ମଧୁର ବଚନ ଭଣିଲେ ହର,
"ଲାଗିଥିଲା ଦେବୀ ସେ ବାଲ୍ୟକ୍ରୀଡ଼ା !
ହେ ପ୍ରିୟେ, କପାଁଇ ମନରେ ବ୍ରୀଡ଼ା ?
ରହୁ ଏ ତୁମ୍ଭର କୃତ
ବାଲିବନ୍ଧ ନାମେ ଯୁଗେ ଯୁଗେ ଥାଉ, ଦେଖି ଜନେ ହେବେ ମୁକ୍ତ ।"
ମକର ଆଗମେ ଜାହ୍ନବୀ ସ୍ନାନ
ଇଚ୍ଛାରେ ଭଣିଲେ ଉମା ବଚନ ।
"ହେଉ," ବୋଲି ଶିବ ପାର୍ବତୀ-କର
ଧରି ପ୍ରବେଶିଲେ ଶବରୀ ତୀର ।
ପାର୍ବତୀ ମନେ ସଂଶୟ—
ଖୋଲାପ ନଦୀକି ଗଙ୍ଗା ନଦୀ ବୋଲି ଠାଉଛନ୍ତି ଦୟାମୟ ।
ଈଶ୍ୱର ପାର୍ବତୀ ସଂଶୟ ଜାଣି
ସୁଧୀରେ ପ୍ରିୟାଙ୍କୁ ଭଣିଲେ ବାଣୀ,
"ଗଙ୍ଗା ଏ ଶବରୀ, ନାହିଁ ସଂଶୟ ।"
ଭଣିଲେ ପାର୍ବତୀ କରି ବିନୟ,
"ନାହିଁ ତ ତ୍ରିବେଣୀ ଘାଟ !"
"ଦେଖୁ ବୁଜ," କହି ଯମୁନା ବାଣୀଙ୍କି ହର କଲେ ଧ୍ୟାନେ ଭେଟ ।

"ଠକ୍ ଫେଡ଼୍," ବୋଲି ଆଜ୍ଞା ହେବାରୁ
ଗୃହଁଲେ ପାର୍ବତୀ— ଖୋଲିପ ଗୃରୁ
ଛନ୍ନଧାରେ ବହେ କଳ ନାଦରେ !
ପାର୍ବତୀ ଆଶ୍ଚର୍ଯ୍ୟ ଲଭି ମନରେ
ଶିବଙ୍କୁ କଲେ ପ୍ରାର୍ଥନା,
"ଅବଳାର ଦୋଷ ନ ଘେନ ମାନସେ, ହେଲି ଯା ଫଶସ୍ମ ମନା ।"
ଶୁଣି ଶିବ ହସି ଭାଷିଲେ ଗିର,
"କିବେଣୀରେ ଦେବ ସ୍ନାହାନ କର ।
ତୁମ୍ଭ ହେତୁ ପ୍ରିୟେ ଖ୍ୟାତ ଏ ଠାବ ।
ସଦା ଏଥି ତୁମ୍ଭ କୀର୍ତ୍ତି ରହିବ ।"
ସେ ଦିନୁ ରହିଛି କୀର୍ତ୍ତି—
ନଦୀ ଧାରେ ଜନେ ଅସ୍ଥି ନିକ୍ଷେପନ୍ତି, **ଅସ୍ଥିକୁଣ୍ଡ** ଅଛି ଏଥି ।
ଏସନ ଆନନ୍ଦେ ପାର୍ବତୀ ହର
ଗୁପତେ ରହିଲେ ଏ ମଞ୍ଚ ପୁର ।
ଦେବ ଋଷି ବିନା ନ ଜାଣେ କେହି ।
ସତ୍ୟଯୁଗ ଗୋଟି ଗଲିକ ବହି ।
ତ୍ରେତା ଯୁଗେ ନରହରି
ପିତୃ ସତ୍ୟ ପାଇଁ ବନବାସୀ ହୋଇଲେ ରଘୁକୁଳେ ଅବତରି ।
ଦଣ୍ଡକା ଅରଣ୍ୟେ କରନ୍ତେ ବାସ,
ନିକଟେ ଶୁଣନ୍ତି ଗୁପ୍ତ କୈଳାସ
ଋଷିମାନଙ୍କର ମୁଖରୁ ଶୁଣି,
ମହା ଶିବ ଭକ୍ତ ଶ୍ରୀ ରଘୁମଣି
ଏ କଥା ମନେ ଭାବନ୍ତି,
"ଶିବଙ୍କୁ ନୋଇଁ ପ୍ରକାଶିବି ସ୍ଥାନ, ରହିଥିବ ମୋର କୀର୍ତ୍ତି ।"

ଗୁପତ କୈଳାସ ଯିବାର ବାଟେ
ବାସ କଲେ ରାମ ଗିରି ନିକଟେ ।
ଗୁପତ ସ୍ଥାନଟି କଲେ ଦର୍ଶନ ।
ପୂର୍ବ ଦ୍ୱାରେ ରହି କଲେ ବନ୍ଦନ,
ଜୟ ଜୟ ପଞ୍ଚାନନ
ମୋ' ବିନତି ଶୁଣ ଆହେ ଶୂଳପାଣି ଥରେକ ଦିଅ ଦର୍ଶନ ।
ପିତୃ ସତ୍ୟ ପାଳ ମୁଁ ବନବାସ
କରିଛି ହେ ପ୍ରଭୁ ଚଉଦ ବର୍ଷ ।
ତୁମ୍ଭେ ତ ଏ ବିଶ୍ୱେ ଅଟ ଈଶ୍ୱର,
ମୋର ମନବାଞ୍ଛା ପୂରଣ କର—
ରହୁ ଯାଉ ମୋର କୀର୍ତ୍ତି,
ଏ ଗୁପ୍ତ ସ୍ଥାନଟି ପ୍ରଚାରିତ ହେଉ, ଏତିକ ମୋର ବିନତି ।"
ଶିବ ବହିଥିଲେ ଶବର ବେଶ,
ରାମ ଆସିଥିଲେ ଗୁପ୍ତ କୈଳାସ,
ଏ ବେନି କଥାକୁ ଦିଏଁ ପ୍ରମାଣ—
ଗୁପ୍ତେଶ୍ୱର ପାଶ ଗ୍ରାମସ୍ଥ ଜନ
ତାଙ୍କ ଆଦରଣ ଶୁଣ
ଘରୁ ବାହାରିଲେ ବନରେ ବୁଲନ୍ତି ହୋଇ ଧନୁଶରପାଣି ।
ଶ୍ରୀ ରାମଙ୍କ ସ୍ତୁତି ଜାଣିଲେ ହର ।
"ଦେବ ଅଟେ ବିଷ୍ଣୁ ରାମାବତାର
ଧରି ହୋଇଛନ୍ତି ଏ ସ୍ଥାନେ ବିଜେ ।
ହେଉଁ ନାମ ଗୋଟି ମୁଁ ନିତ୍ୟେ ଭଜେ,
ଆଜ ଦେଖିବି ସାକ୍ଷାତ ।"
ଏତେ ଭାଷି ହର ହୋଇଲେ ଶ୍ରୀ ରାମଚନ୍ଦ୍ର ଅଗ୍ରତ ।

ଦେଖିଲେ, ଶ୍ୟାମଳ    ଗଉର ମୂର୍ତ୍ତି
ଜଟାଭ୍ରର ବହ୍ନି    ଶୋଭା ଧରନ୍ତି ।
ଜନକ ନନ୍ଦିନୀ    ଛନ୍ତି ସଙ୍ଗର ।
ସାଦରେ ବିମୂର୍ତ୍ତି    ନେଇ ଈଶ୍ୱର
ତାହାଙ୍କୁ ଦେଲେ ବସତି ।
ଶବରୀ ତଟର **ମଧ୍ୟ**ତଶୈଳ ପରେ ରହିଅଛି ପ୍ରତିକୃତି ।
"କାହିଁ ବଜେ ହେଲ ?"    ଭଣିଲେ ହର ।
ଶ୍ରୀ ରାମ ଭଣିଲେ,    "ସୂର୍ଯ୍ୟବଂଶର
କାଳେ କାଳେ ରହୁ    ଅକ୍ଷୟ କୀର୍ତ୍ତି,
ଏ ଗୁପତ ସ୍ଥାନ    ଲଭୁ ପ୍ରଖ୍ୟାତି,
ଏତିକି ମାଗୁଣି ମୋର ।
ଜାଣିଛ ତ ପ୍ରଭୁ ସୂର୍ଯ୍ୟବଂଶ ନୃପେ ଭକତ. ଅଟୁଁ ତୁମ୍ଭର ।"
ଈଶ୍ୱର ଭଣିଲେ    ଅଳପ ହସି,
"ତ୍ରେତୟୁଗେ ହେବ    ଗୁପତ ବାସୀ,
କରିଥିଲ ମନେ    ଏହି ଭାବନା
ନୁ ପୂର୍ଣ୍ଣ ହେଉ    ତୁମ୍ଭ କାମନା,
ରହୁ ତୁମ୍ଭ ବଂଶ କୀର୍ତ୍ତି,
ମୋ ଭାବନା ପୂର୍ଣ୍ଣ ନ ହେଉ ହେ ଆନ, କଳିଯୁଗେ ହେବ ଖ୍ୟାତ ।"
କଳିଯୁଗେ ଜାତ    ତୁମ୍ଭ ବଂଶରେ
ବିନାୟକ ଦେବ    ମୋହର ବରେ
ନନ୍ଦପୁର ରାଜ୍ୟେ    ହେବ ରାଜନ ।
ତାଙ୍କ ବଂଶେ ଜାତ    ହେବେ ବିକ୍ରମ
ପୁଣ୍ୟବନ୍ତ ମହାରାଜା ।
ଜୟପୁର ଥାପି ଏ ସ୍ଥାନକୁ ଦେଖି ପ୍ରଥମେ କରିବେ ପୂଜା ।

ସବୁ ରହିଥିବ ମୋ କୀର୍ତ୍ତି ମାନ,
ନିଜ ତନୁ ମୁହିଁ କରି ଗୋପନ
ଧରିବି ମୃଣ୍ମୟ ଲିଙ୍ଗ ଆକାର,
ପାର୍ବତୀ ରହିବେ ହୃଦୟେ ମୋର,
ହେବି ପଶ୍ଚିମାଭିମୁଖ,
ମନ୍ତ୍ର ସିଦ୍ଧି ସ୍ଥାନ ଲକ୍ଷଣ ସମାନ ବିଶ୍ୱାସ କରିବେ ଲୋକ ।
ପୁଣି କେତେକାଳେ ସେ ବଂଶେ ଜାତ
ଦୟା ଦାକ୍ଷିଣ୍ୟାଦି ଗୁଣ ମଣ୍ଡନ
ସ୍ୱଧର୍ମ ତତ୍ପର ପ୍ରଶସ୍ତ କର୍ମା
ଜନ୍ମିବେ ଶ୍ରୀ ବିକ୍ରମଦେବ ବର୍ମା ।
ସେ ନୃପ ରାଜୁତି କାଳେ
"ସୂର୍ଯ୍ୟବଂଶାବଳୀ" ପ୍ରକାଶ ପାଇବ, ଏ କୀର୍ତ୍ତି ଥିବ ତହିଁରେ ।
କଳିଯୁଗାରମ୍ଭେ ହେବ ଏ କୀର୍ତ୍ତି ।
ଯେଉଁ ଗିରି ତଟେ କରି ବସତି
ତୁମ୍ଭେ ଲଭିଥିଲ ମୋର ଦର୍ଶନ,
ରାମଗିରି ତାର ହୋଇବ ନାମ—
ଏ ସ୍ଥାନ ମୁଖ୍ୟ ପତ୍ତନ,
'ରାମଗିରି—ଗୁପ୍ତେଶ୍ୱର' ବୋଲି କରି ବିଖ୍ୟାତ କହିବେ ଜନ ।
ଏତେ କହି ହର ବିଦାୟ ହେଲେ
ଭାଇ ଭାର୍ଯ୍ୟା ଘେନି ଶ୍ରୀରାମ ଗଲେ,
ଦଣ୍ଡକା ଅରଣ୍ୟେ ହେଲେ ପ୍ରବେଶ ।
କଳିଯୁଗେ ଖ୍ୟାତ ଗୁପ୍ତ କୈଳାସ—
ଯାହା ସେ ଈଶ୍ୱର ଆଜ୍ଞା,
ବର୍ତ୍ତମାନ ତାହା ପ୍ରତ୍ୟକ୍ଷ ହୁଅଇ, କେ କରି ପାରେ ଅବଜ୍ଞା !

